# ଜହ୍ନି ଓଷା ।



କହନ୍ତି ମିତଣୀ ଶୁଣ ତୁଳସୀ । ଆଶ୍ୱିନ ମାସରେ ପଡ଼େ ଏ ଓଷା ତରଣି ଦିନ ଯାଏ ମେଳ ହୋଇ । ଲିଆ ଉଖୁଡ଼ା ଯେ ଯାହା ମିଳଇ । ଜହ୍ନି ଫୁଲ ଯେତେ ଯେ ଯାହା ବାଳୀ । ଓଷା ପୂଜନ୍ତି ଦେଇ ହୁଳହୁଳି ॥ ମଣ୍ଡନ ଅପୂର୍ବ ଯତନ କରି । ବାଳୁଙ୍ଗିଅମାନେ ହୋଇଣ ମେଳି ॥ ଏ ଓଷା କଲେ କି କି ମାନ ହୁଏ । ଯାହା ମନାସିବ ସେ ଫଳ ପାଏ ॥ ଦେହରେ ଯେଉଁ ବ୍ୟାଧିମାନ ଥିବ । ଜହ୍ନି ଓଷା କଲେ ଭଲ ହୋଇବ ॥ ଯେଉଁ ଲୋକମାନେ ହେଳା କରିବେ । ଅପୁତ୍ରିକ ହୋଇ ସେହୁ ମରିବେ ॥ ଯେଉଁ ଲୋକମାନେ ଆନନ୍ଦ ହେବେ । ଧନ ଜନ ଗୋପ ଲକ୍ଷ୍ମୀ ପାଇବେ ॥ ଏଥୁ ଅନନ୍ତରେ ଶୁଣ ପ୍ରବୀଣ । ଆଉର କଥାଏ କହିବି ପୁଣି ମହାରାଷ୍ଟ୍ର ଦେଶେ ଅଛଇ ଘର । ନାମ ଯେ ତାହାର ଶ୍ରୀ ମହେନ୍ଦ୍ର-ଶିଖ ॥ ତାର ଭାରିଯା ନାମ ଜମ୍ବୁବତୀ । ସେହୁ ପିଲ୍ଲଙ୍କୁ କଲା ଜଳପଣ୍ଡା ॥ ମୁଣ୍ଡି ଖାଇବାର ମଗନ ଜାଣି । ଏହା କହି ଗଣ୍ଡି ଘରକୁ ପୁଣି ॥ ଏ କଥା ଶୁଣିଣ ସେ ବୃନ୍ଦାବତୀ । ମାଣ୍ଡିଆରେ ସର୍ପ ପେଷିଲେ ଝଟିତି ॥ ଶୋଇଥିଲେ ଶୋଇଛି ତାର ବାଳକ । ଦଂଶିଲା ଯାଇଁ ତାକୁ କାଳସର୍ପ ॥ ମାତା ତାର କ୍ଷୀର ଦେବାକୁ ଗଲା । ଯାଇଣ ପୁତ୍ରକୁ କୋଳେ ନେଲା ॥ ଦେଖିଲା ତାର ପିଣ୍ଡେ ପ୍ରାଣ ନାହିଁ । ହା ପୁତ୍ର ବୋଲି ରୋଦନ କଲେ ପୂର୍ବେ ମୁଁ କେଉଁ ପାପ କରିଥିଲି । ଏ ଜନ୍ମେ ମୁହିଁ ଆଣ୍ଟକୁଡ଼ୀ ହେଲି ॥ ଏହି ସମୟରେ ପିତା ତାହାର । ପଣ୍ଡରେ ମଲ୍ଲ କୈମନ୍ତେ କୁମର ॥ ଭାରିଯା ବୋଲେ ବାଳୁଙ୍ଗିଅମାନେ । ଓଷା କରୁଥିଲେ ଆନନ୍ଦ-ମନେ ॥ ତାହାଙ୍କୁ ଦେଖି ମୁଁ ଲଙ୍ଘିତ କଲି । ଲଙ୍ଘିତ କରି ଏ ଦଣ୍ଡ

ଘାଇଲ୍ର ॥ ଶୁଭସ୍ତ ବୋଲେ ଶୁଲ ଏବେ ଯିବା । ବୃନ୍ଦାବତୀଙ୍କ ଚରଣ
ସେବିବା ॥ ନୂର ପ୍ରାଣିଙ୍କର ଏକଚିତ୍ତ ମନ । ବୃନ୍ଦାବତୀଙ୍କି ମନେ କଲେ
ଧ୍ୟାନ । ଜୀଆଇ ଦେବ ଯେବେ ମୋ କୁମର । ବାନା ବଖ୍ୟାତ ହୋଇବ
ଭୂମ୍ବର ॥ ତାହାଙ୍କ ଭକ୍ତି ଦେଖି ବୃନ୍ଦାବତୀ । ପ୍ରସନ୍ନ ହୋଇଲେ ଆସି
ହଂଟିଲ ॥ କହେ ଶୁଣ୍ଠାକୁଣୀ ଗରବ କଲୁ । ଓଷାକୁ ମୋର କ୍ଷମା ... ।
କଲୁ ॥ ମାଏଁ ଜାଣି ତାର ବିକଳ ମନ । ପୁତ୍ର ପାଶରେ ମିଳଲେ ବନ୍ଦନ
ପୁତ୍ରକୁ ସେ ତାର ଜୀଆଇ ଦେଲେ । ବୃନ୍ଦାବତୀ ଅନ୍ତର୍ଦ୍ଧାନ ହୋଇଲେ
ଶୋଦରେ ବସି କାନ୍ଦଇ କୁମର । ଆନନ୍ଦମନେ ଧଇଲା କୋଳରେ ॥
ବୃନ୍ଦାବତୀଙ୍କର ଆଜ୍ଞା ଏମନ୍ତ । ଆନନ୍ଦ ମନେ କରିବ ଏ ବ୍ରତ ॥
ଗୁରୁଳା ଦିନ ଉପବାସ ଥିବ । ପିଠାପଣା କରି ପୂଜା କରିବ ॥
ଏମନ୍ତେ ତୁଳସୀ ମୂଳରେ ପୁଣ । ପୂଜାବିଧି ସାରି ଅର୍ଘ୍ୟ ଦେଇଣ
ଆନନ୍ଦମନେ ହୁଳହୁଳି ଦେଲେ । ଯେ ଯାହା ଘରକୁ ଫେରିଣ ଗଲେ ।
ଏଥୋର ଅଗ୍ରର ତେତିଶ ପଦ । ସମ୍ପୂର୍ଣ୍ଣ ହୋଇଲା ପ୍ରଥମ ଗ୍ରନ୍ଥ ॥



କହିବା କଥା ଏ ଶୁଣ ସୁଜନ । ମନରେ କିଛି ନ ଧରିବ ଆନ ॥
କଥାଏ ମନରେ ପଡ଼ିଲା ମୋର । ତୁଳସୀଦେବୀଙ୍କ ଏ ଓଷା ସାର ॥
ଯେଉଁ ପିଲାମାନେ ଓଷା କରନ୍ତି । ଅଭୟ ବର ତାହାଙ୍କୁ ଦିଅନ୍ତି ॥
ଏମନ୍ତେ ଉଜ୍ଜୟିନୀନାମେ ପୁର । ତହିଁରେ ଅଛି ଏକ ସାଧୁଘର ॥
ନାମ ତାହାର ଅଟେ ଭାଗୀରଥୀ । ତାର ଭାରିଯା ନାମ ସେ ସୁନାନ୍ତି ॥
ତାହାର ଅଟନ୍ତି ପାଞ୍ଚଟି ପୁଅ । ପାଞ୍ଚ ପୁଅରେ ଗୋଟିଏ ଝିଅ ॥ ତାର
ଝିଅ ନାମ ଅଟଇ ଗଧୀ । ତାର ଦେହରେ ହେଲା କୁଷ୍ଠବ୍ୟାଧି ॥
ମାତା ତାହାର ଦେଖିଣ କାନ୍ଦଇ । କେଉଁ ଦେବତା ଥିଲେ ଏହା
ଲହି ଦେଖିଲା ତୁଳସୀମୂଳରେ ପୁଣ । ପୂଜୁଛନ୍ତି ପିଲା ମେଳ
ହୋଇଣ ॥ ସୁନାନ୍ତି ଯତ୍ନରେ ଫେରାଏ ଶୁଣ । ଏ ଓଷା କଲେ ହୋଏ
କେଉଁ ଗୁଣ ॥ ଦେହରେ ଯେଉଁ ବ୍ୟାଧିମାନ ଥିବ । ଏ ଓଷା କଲେ

ଭଲ ହୋଇଯିବ ॥ ଯେବେ ମୋ ପିଲାଙ୍କ ଭଲ ହୋଇବ । ପାଞ୍ଚ
ବର୍ଷଯାଏ ଓଷା କରିବ ॥ ଏମନ୍ତ କହିଣ ଗଲା ସେ ବାଳୀ । ତାହା
ନାମରେ ଦେଲେ ହୁଳହୁଳି ॥ ଏମନ୍ତେ କେତେ ଦିନ ରହି ଗଲା ।
ଆଶ୍ୱିନ ମାସ ପ୍ରବେଶ ହୋଇଲା ॥ ପିଲାମାନେ ସମସ୍ତେ ମେଳ
ହୋଇ । ଓଷା ପୂଜନ୍ତି ହୁଳହୁଳି ଦେଇ ॥ ଛର ଦେହରୁ କୁଷ୍ଠବ୍ୟାଧି
ଗଲା । ଓଷା କରିବ ବୋଲିଣ ବୋଇଲା ॥ ବ୍ରାହ୍ମଣ ମାତାକୁ କହିଲ
ଝିଅ । ଓଷା କରିବି ପୂଜା ମୋତେ ଦିଅ ॥ ଶୁଣିଣ ମାତା କ୍ରୋଧଭର
ହୋଇ । ନ କର ଓଷା ବୋଲିଣ ବୋଲଇ ॥ ଏମନ୍ତ ଶୁଣିଣ ସେ
ବ୍ରାହ୍ମଣୀ । ମାୟାରେ ଗୃହ ପେଷିଲେ ଝିଅଟି ॥ ତାର ପୁଅଙ୍କୁ ତିହ୍ନେ
ଘେନି ଚଳେ । ଜୋରତ ଉଡରେ ନେଇ ରଖିଲେ । ପୁତ୍ରଙ୍କୁ
ନ ପାଇଲା ଖୋଜି କରି । ମାତା କାନ୍ଦଇ ତାଙ୍କ ନାମ ଧରି ॥
କେଉଁଠି ଗଲ ଆରେ ରଙ୍କୁଣୀଧନ । ନ ଦେଖିଲି ଆଉ ତୁମ୍ଭ ବଦନ
ଏମନ୍ତ ବୋଲିଣ ଆକୁଳ ମନ । ବୃନ୍ଦାବତୀଙ୍କ ମନେ କଲା ଧ୍ୟାନ ।
ପାଞ୍ଚ ପୁଅଙ୍କୁ ମୁଁ ଯେବେ ପାଇବି । ପାଞ୍ଚଟି କାକରୀ ପୂଜା କରିବି ॥
ବୋଲିଲେ ବୃନ୍ଦାବତୀ ଗରବ କଲୁ । ଓଷା ନ କର ତୁ ବୋଲି ବୋଇଲୁ
ସ୍ୱପନରେ ତାଙ୍କୁ କହିଣ ଗଲେ । ଝିଅ ତୋ ଓଷା କରୁ ବୋଇଲେ ॥
ଏମନ୍ତେ ଝିଅ ତାର ଓଷା କଲା ପାଞ୍ଚଟି କାକରୀ ନେଇ ପୂଜିଲା ॥
ଅଜାଡିମାନେ ପୂଜା ବାଣ୍ଟି କଲେ । ହୁଳହୁଳି ଦେଇ ଘରକୁ ଗଲେ ॥
ପାଞ୍ଚ ପୁତ୍ର ପୁଣି ଘରେ ମିଳିଲେ । ଆନନ୍ଦରେ ସୁଖେ କାଳ କାଟିଲେ ॥
ଏଗାର ଅକ୍ଷର ତଇଶି ପଦ । ସମ୍ପୂର୍ଣ୍ଣ ହୋଇଲା ଦ୍ୱିତୀୟ ଛାନ୍ଦ ।



ଏଥୁ ଅନନ୍ତରେ ଶୁଣ ହେ ରସ । ତୁଳସୀଦେବୀ ମହିମା ଅଶେଷ ॥
କର୍ଣ୍ଣାଟ ଦେଶରେ ତାହାର ଘର । ନାମ ତାହାର ଅଟେ ପୀତାମ୍ବର ॥
ଭାର୍ଯ୍ୟା ନାମ ତାର ପ୍ରିୟମ୍ବଦା । ତାହାର ଅଟଇ ବଡ ଭକତି ॥
ସାତ ପୁଅରେ ତା ଗୋଟିଏ ଝିଅ । ଝିଅଠାରେ ତାର ଅତ୍ୟନ୍ତ ସ୍ନେହ ।
ଝିଅ ବୋଲଇ ମାତା ତୁମ୍ଭେ ଶୁଣ । ଏ ଓଷା କରିବଇଁ ମୁହିଁ ପୁଣ

ଏମନ୍ତ ମାତା ଆଗରେ କହଣ । ଭଜା ଜଖୁଡ଼ା ଆଣି ଦିଅ ପୁଣ ॥ ମାତା ତାହା ଶୁଣି ଆନନ୍ଦ ହେଲା । ଭଜା ଜଖୁଡ଼ା ତାକୁ ଆଣି ଦେଲା ॥ ଭଜା ଜଖୁଡ଼ା ତହୁଁ ନେଇ ଗଲା । ତୁଳସୀମୂଳେ ନେଇ ଥୋଇ ଦେଲା ॥ ମନ ଆନନ୍ଦେ ପୂଜାବିଧି କଲେ । ଫୁଲଚନ୍ଦନ ନେଇ ଅର୍ଘ୍ୟ ଢୋଳିଲେ ॥ ଏଗାର ଅକ୍ଷର ଏଗାର ପଦ । ସମ୍ପୂର୍ଣ୍ଣ ହୋଇଲା କୃତାସ୍ତୁ ଛନ୍ଦ ॥ ବାତୁଳ କଣ୍ଠ ନାହିଁ ତାର ବୁଦ୍ଧି । କ୍ଷମା କର ହେ ପ୍ରଭୁ କୃପାନିଧି ॥



ଆଉରି କଥାଏ ସୁଜନେ ଶୁଣ । ବୃନ୍ଦାବତୀଙ୍କ ମହିମା ଏସନ ॥ ଯେଉଁ ପିଲାମାନେ ଓଷା କରନ୍ତି । ବୃନ୍ଦାବତୀ ସନ୍ତୋଷ ହେଉଥାନ୍ତି ॥ କିଛି ଦେଶରେ ତାହାର ଘର । ନାମ ତାହାର ଅଟେ ଟଙ୍କେଶ୍ୱର ॥ ଭାର୍ଯ୍ୟା ନାମ ଅଟେ ପଦ୍ମାବତୀ । କରୁଅଛନ୍ତି ସେହୁ ବହୁତ କୀର୍ତ୍ତି ॥ ତାହାର ଅଟଇ ଗୋଟିଏ ପୁଅ । ଗୋଟିଏ ପୁଅରେ ଉଠନ୍ତି ଝିଅ ॥ ଝିଅ ବୋଲନ୍ତି ମାତା ତୁମ୍ଭେ ଶୁଣ । ଜହ୍ନି ଓଷା କରନ୍ତୁ ଆମ୍ଭେ ପୁଣ ॥ ଏମନ୍ତ ବୋଲି ଝିଅ ଗୋଳ କଲେ । ଭଜା ଆମ୍ଭଙ୍କୁ ଦିଅ ସେ ବୋଇଲେ ॥ ମାତା ତାଙ୍କର ବୋଲଇ ସେ ପୁଣ । ମୂର୍ଖୀ ଦୂଷିବାର ହୋଇଛି ବଧାନ ॥ ଏମନ୍ତ ବୋଲି ତାଙ୍କୁ ନାହିଁ କଲା । ଯାଇଣ ଗମ୍ଭୀରଘରେ ଶୋଇଲା ॥ ଏମନ୍ତ ଜାଣିଣ ସେ ବୃନ୍ଦାବତୀ । ସ୍ୱପନରେ ତାକୁ କହିଲେ ଖତି ॥ କଲ୍ୟାଣ ଧାମର ମୂଳପଣ କଲୁ । ଓଷା ନ କର ବୋଲି ତୁ ବୋଇଲୁ ॥ ଯେବେ ତୋ ଝିଅ ଓଷା ନ କରିବ । ସାତ ଦିନେ ତୋ ପୁଅ ନାଶ ଯିବ ॥ ଏମନ୍ତେ ଯେ ବୃନ୍ଦାବତୀ କହିଣ । ଅନ୍ତର୍ଦ୍ଧାନ ହୋଇ ଗଲେକ ପୁଣ ॥ ନିଦ୍ରାରୁ ଉଠିଣ ସେହି କାମିନୀ । ଗୃହଦ୍ୱାରକୁ ଚାହିଁ ଦେଲା ପୁଣି ॥ ଦେଖିଲା କେହି ନାହାନ୍ତି ପାଖରେ । ମନରେ ତାହାର ଭାବନା କରେ ॥ ଓଷା କରିବାକୁ ମୁଁ ନାହିଁ କଲି । ନାହିଁ କଲିରୁ ସ୍ୱପନ ଦେଖିଲି ॥ ଏମନ୍ତ ବିଚାର ମନରେ ତାର ।

ଝିଅଙ୍କୁ ବୋଇଲେ ଓଷା ତୁମ୍ଭେ କର ॥ ଏମନ୍ତେ ଝିଅ ତାର ଓଷା କଲେ-
ବୃନ୍ଦାବତୀ ଯେ ସନ୍ତୋଷ ହୋଇଲେ ॥ ନିତ୍ୟମାନେ ହୁଳହୁଳି ଦେଇଣ
ଜଇ ଫୁଲରେ ବନ୍ଦାଇଲେ ପୁଣି ॥ ବନ୍ଦାପନା ସାରି ଅର୍ଘ୍ୟ ଦେଇଣ
ଘରକୁ ପିଲାଏ ଗଲେକ ପୁଣ ॥ ଏଗାର ଅକ୍ଷରେ ବାନ୍ଧି ପଦ
ଭଣନ୍ତି ହୋଇଲା ଚତୁର୍ଥ ଛାନ୍ଦ ॥ ବାତୁଳ କୃଷ୍ଣ ନ ଧରିବ ଦୋଷ ॥
କ୍ଷମା କର ହେ କମଳା ବିଳାସ ॥



ଶୁଣ ପିଲାଏ ହୋଇ ଶୁଦ୍ଧମନ । କହିବା ତୁମ୍ଭଙ୍କୁ ଓଷା ବିଧାନ ॥
ସକାଳରୁ ସ୍ନାନ ଆସି କରିବ । ଅଗଣାରେ ଚଉରାଏ ସ୍ଥାପିବ ॥ ଏକ-
ବର୍ଣ୍ଣୀ ଗାଈ ଗୋବର ନେଇ । ସୁସଜ୍ଜ କରି ଲିପିଥିବ ତହିଁ ॥ ପାଞ୍ଚ
ବର୍ଣ୍ଣରେ ମୁରୁଜ ଛାପିବ । ଚଉରାର ଚାରିପାଖରେ ଦେବ ॥ ଓଷା
ବିଧି ସମସ୍ତ ସଜାଡ଼ିବ । ଚଉରାମୂଳରେ ନେଇ ରଖିବ ॥ ଓଷାବିଧି
ସାରି ସାୟଂକାଳରେ । ପ୍ରବେଶ ହୋଇବ ଚଉରାମୂଳେ ॥ କଉଡ଼ି
ଗୁଆ ନଡ଼ିଆ ନେଇଣ । ଚଉରାମୂଳେ ସ୍ଥାପନା କରିଣ ॥ ଜହ୍ନିଫୁଲ
ଗୁଡ଼ିଏ ଆଣିବ । ବୃନ୍ଦାବତୀଙ୍କି ମଣ୍ଡଣି କରିବ ॥ ପୂର୍ଣ୍ଣକୁମ୍ଭ ନେଇଣ
ବସାଇବ । ସ୍ତ୍ରିୟା ମାନେ ହୁଳହୁଳି ଦେବ ॥ ଆହୁରି କଥାଏ କହିବା
ଶୁଣ । ଆଇଁଷ ଜହ୍ନି ନ ଖାଇବ ପୁଣ ॥ ସଉରାଷ୍ଟ୍ର ଦେଶେ ରାଜାଏ
ଥିଲା । ଜହ୍ନିଫୁଲ ତା ଝିଅ ଛିଣ୍ଡାଇଲା ॥ ଛିଣ୍ଡାଇବାରୁ ହାତ ତାର
ପୁଣ । ଖଣ୍ଡ ଖଣ୍ଡ ହୋଇଗଲା ମିଳଣ ॥ କାନ୍ଦଣା ମାତା ଆଗରେ କହିଲା ।
କପାଁ ହାତ ମୋ ଏମନ୍ତ ହୋଇଲା ॥ ହାତ ଦେଖି ତାର ମାତା କହଇ ।
କପାଁ ହାତ ତୋ ଏମନ୍ତ ହୁଅଇ ॥ ଝିଅ ବୋଲେ ମୁଁ ତ କିଛି କରି
ନାହିଁ । ଏକା ମାତ୍ର ଅଛି ଜହ୍ନି ଛିଣ୍ଡାଇ ॥ ଶୁଣିଣ ମାତା ତାହାର
କାନ୍ଦିଲା । କେଉଁ ବିଧାତା ମୋତେ ଏହା କଲା ॥ ବୃନ୍ଦାବତୀ ତାର
ଜାଣିଣ ମନ । ବୃଦ୍ଧୀ ବ୍ରାହ୍ମଣୀ ରୂପ ହେଲେ ପୁଣ ॥ ତାହାର ଘର
ଦୁଆରକୁ ଗଲେ । କାହିଁ କାନ୍ଦୁଛ ବୋଲିଣ ବୋଇଲେ ॥ କାନ୍ଦଣୀ

